


# କାର୍ବନ୍

ବିଧୁଭୂଷଣ ପଟ୍ଟନାୟକ

ପ୍ରକାଶକ :
ନଳିନୀକାନ୍ତ ନନ୍ଦ
ଏସ୍.ବି ପବ୍ଲିକେଶନ୍ସ
ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ :—୧୯୮୭

ମୂଲ୍ୟ ଟ: ୨.୫୦

# କାର୍ବନ୍

| କ୍ର·ନଂ | ସୂଚୀ | ପୃଷ୍ଠା |
|---|---|---|
| ୧। | କାର୍ବନ୍ ବଲସ୍ | ୧ |
| ୨। | କାବନ୍ ଷ୍ଟିକସ୍ | ୩ |
| ୩। | ବ୍ଲାକ୍ କଲର୍ | ୫ |
| ୪। | ଓ୍ୱାର୍କିଂ ଟେବୁଲ୍ କଲର୍ | ୭ |
| ୫। | ସୁଗାର ସ୍କର୍ଲୋଲ୍ | ୯ |
| ୬। | ସୁ ପଲସ୍ ସୋପ୍ | ୧୧ |
| ୭। | ଓାର୍କ୍‌ରୁମ୍ କ୍ଲଥ୍ | ୧୩ |
| ୮। | କାବନ୍ ବୋଟ୍ | ୧୫ |
| ୯। | ସନ୍ ଲଇଟ୍ ଲ୍ୟାମ୍ପ୍ | ୧୭ |
| ୧୦। | କାବନ୍ ଫାଓ୍ୱାର୍ | ୧୯ |
| ୧୧। | କାବନ୍ ଫ୍ରୁଟସ୍ | ୨୧ |
| ୧୨। | ଫାଓ୍ୱାର୍ ବଲ୍ କୋନ୍ | ୨୩ |

P·E (G)—6
181—192

# କାର୍ବନ ବଲ୍ସ

**ଉପକରଣ :—**

୧। କାର୍ବନ ବ୍ଲକ    ୨। ଗମ୍
୩। ଓ୍ୱାଟର    ୪। ଛୁରୀ



**ପରୀକ୍ଷା :—** ତୁମ ଘର କାଠ ଚୁଲ୍ଲୀରୁ ବଡ଼ ବଡ଼ ଅଙ୍ଗାର ଖଣ୍ଡ କେତୋଟି ସଂଗ୍ରହ କର କିମ୍ବା କାଠ ଜାଳି ଏହି ଅଙ୍ଗାର ଖଣ୍ଡ ପ୍ରସ୍ତୁତ କର । ଅରଖ କିମ୍ବା ଜନଅର ଗଛର କେତେ ଖଣ୍ଡି ମୋଟା କାଠ ନେଇ ଚୁଲ୍ଲୀରେ ଜାଳ ଓ ସେଗୁଡ଼ିକ ଜଳିଯିବା ପରେ ବାଲିରେ ପୋତି ଲିଭାଇ ଦିଅ ।

ପରଦିନ ବାଲିରୁ ଅଙ୍ଗାର ଖଣ୍ଡ ଗୁଡ଼ିକ କାଢ଼ି ଟେବୁଲ ଉପରେ ରଖ । ତୀକ୍ଷ୍ଣ ଧାର ବିଶିଷ୍ଟ ଗୋଟିଏ ବ୍ଲେଡ଼ ଛୁରୀ ନିଅ । ଅଙ୍ଗାର ଖଣ୍ଡ ଗୁଡ଼ିକ ଦେହରୁ ଏହି ଛୁରୀ ସାହାଯ୍ୟରେ କେତେ ଗୁଡ଼ିଏ ବଲ୍ କାଟି

ବାହାର କର । ଶେଷରେ ବାଲି କାଗଜ ଘଷି ବଲ୍ ଗୁଡ଼ିକ ଉପର ମସୃଣ କର ।

କିଛି ଗମ୍ ଆକାଶିଆ ଗୋଟିଏ ଗିନାରେ ଜଳରେ ମିଶାଇ ରଖ । ଗମ୍ ବହଳ ହେଲେ ତାହାକୁ ଫେଣ୍ଟି ଦିଅ ଏବଂ ବ୍ରସ୍ ସାହାଯ୍ୟରେ ଏହି ବଲ୍ ଉପରେ ଅଠାକୁ ଖୁବ୍ ପତଳା କରି ବୋଳ । ବଲ୍ ଗୁଡ଼ିକ ଶୁଖି ଗଲେ କାଗଜ ପେଡ଼ି ମଧ୍ୟରେ ବଲ୍ ଗୁଡ଼ିକ ସାଇତି ରଖ । ସାନ, ବଡ଼ ବିଭିନ୍ନ ଆକୃତିର ବଲ୍ ତିଆରି କରି ରଖ । କାଟନ୍ ବଲ୍ ଗୁଡ଼ିକ ତିଆରି କଲ । ଯେଉଁଗୁଡ଼ିକ କେଉଁ କାମରେ ଲାଗିବ, ଏବେ ଚିନ୍ତା କର ।

**କାରଣ** :— ଉପରୋକ୍ତ କାଠର ଅଙ୍ଗାର୍ ହାଲୁକା ଓ ନମନୀୟ । ସାଧାରଣ ଅଙ୍ଗାର ପରି ଏଥିରେ ଫାଟ ରହେନାହିଁ । ତେଣୁ ଛୁରି ସାହାଯ୍ୟରେ କାଟି ବଲ୍ କରିବା ସହଜ ହୁଏ । ବାଲି ମଧ୍ୟରେ ପୋତି ଲିଭା ଯାଇଥିବାରୁ ତାହା ଉପରେ ପାଉଁଶ ବା ଅକ୍ସାଇଡ୍ ସୃଷ୍ଟି ହୁଏ ନାହିଁ ।

**ବ୍ୟବହାର** :— ଏହାକୁ ତୁମେ ପ୍ରଦର୍ଶନୀରେ ଦର୍ଶାଇ ପାରିବ ।



# କାର୍ବନ୍ ଷ୍ଟିକ୍ସ୍

**ଉପକରଣ :—**

୧ । କନିଅର କାଠି
୨ । ଅରଖ କାଠି
୩ । ଟିଣ ଡବା
୪ । କାଗଜ ଡବା
୫ । ସ୍ପିରିଟ୍ ଲ୍ୟାମ୍ପ
୬ । ଷ୍ଟାଣ୍ଡ୍
୭ । ବାଲି



**ପରୀକ୍ଷା :**—କନିଅର ଫୁଲ ଗଛରୁ କେତେଖଣ୍ଡି ଡାଳ କାଟି ଆଣ । ଏଗୁଡ଼ିକର ଉପର ବକ୍ଲପା ଛୁରୀ ସାହାଯ୍ୟରେ ସମ୍ପି ଛଡ଼ାଇ ଦିଅ ।

ଟେବୁଲ୍ ଉପରେ ଟିଣ ଡବା ଓ ଷ୍ଟାଣ୍ଡଟିଏ ରଖ । ଗୋଟିଏ ଟିଣ ଡବା ନିଅ । ଏହା ଗୋଟିଏ ପତଳା ଚଉକଣିଆ ଡବା ହେବା ଭଲ । ଷ୍ଟିକ୍ ଯେତେ ଲମ୍ବା ହେବ, ସେତେ ଲମ୍ବାର ଡବାଟିଏ ନେବା ଉଚିତ୍ । ଏହି ଡବା ମଧ୍ୟରେ ଖୁବ୍ ପତଳା କରି ବାଲି ପରସ୍ତେ ବିଛାଅ । ଏହା ଉପରେ ବକ୍ଲପା ଛଡ଼ାଯାଇଥିବା କନିଅର କାଠିଗୁଡ଼ିକ ସଜାଇ ରଖ ଏବଂ

ତାହା ଉପରେ ଆଉ ପରସ୍ତେ ବାଲି ରଖ । ଡବାର ଉପର ଖୋଲ ଉପରେ ଛୋଟ ଛୋଟ କେତୋଟି ରନ୍ଧ୍ର କର । ଡବାଟିକୁ ଏବେ ନେଇ ଷ୍ଟାଣ୍ଡ୍ ଉପରେ ରଖ ଏବଂ ତଳୁ ସ୍ପିରିଟ୍ ଦୀପଟିକୁ ଜାଳି ଏହାକୁ ଗରମ କର । ଡ଼ବା ଭିତରେ ବାଲି ତାତି ନାଲ୍ ପଡ଼ିବା ପର୍ଯ୍ୟନ୍ତ ଡବାଟିକୁ ଗରମ କର । ସ୍ପିରିଟ ଲ୍ୟାମ୍ପ୍ ଦ୍ୱାରା ଉତ୍ତପ୍ତ କରିବା ଡେରି ହେଲେ, କୋଇଲା ବା କାଠ ଚୁଲ୍ଲୀ ମଧ୍ୟରେ ଡବାଟିକୁ ରଖି ଗରମ କରାଯାଇପାରିବ ।

ଡ଼ବାଟିକୁ ଆସ୍ତେ ଆସ୍ତେ ଥଣ୍ଡା କର ପରେ ଏଥିରୁ ଅଙ୍ଗାର କାଠ ଗୁଡ଼ିକ ବାହାର କର । ଏହି କାଠଗୁଡ଼ିକୁ ଗୋଟିଏ କାଗଜ ଡବା ମଧ୍ୟରେ ସାଇତି ରଖ ।

**କାରଣ** :—ଓଦା କାଠଗୁଡ଼ିକ ଆସ୍ତେ ଆସ୍ତେ ଗରମ ହେବାରୁ ଏଥିରୁ ଜଳୀୟ ଅଂଶ ବାହାରି ଚାଲିଯାଏ । ତେଣୁ କାଠର ଅବଶିଷ୍ଟାଂଶ ଅଙ୍ଗାର ପଡ଼ିରହେ । କାଠ, ଅଙ୍ଗାର ଓ ଜଳର ଗୋଟିଏ ଯୌଗିକ, ଏହା ତୁମେ ଜାଣିଛ ।

**ବ୍ୟବହାର** :—ଏହାକୁ ତୁମେ ପ୍ରଦର୍ଶନୀରେ ଦର୍ଶାଇ ପାରିବ ।



# ବ୍ଲାକ୍ କଲର୍

ଉପକରଣ :—

୧ । ଷ୍ଟାଣ୍ଡ୍
୨ । କେରୋସିନ୍ ଡିବ
୩ । ଟିଣ କାହାଳୀ
୪ । କାଚ ଡିବା
୫ । ଗମ୍





ପରୀକ୍ଷା :—ଗୋଟିଏ କାଚ ବା ଟିଣ ଡବା ନିଅ । ସେଥିରେ କେରୋସିନ୍ ପକାଇ ବଳିତାଟିଏ ଖଞ୍ଜ । ଗୋଟିଏ ଷ୍ଟାଣ୍ଡ୍ ଦେହରେ ଗୋଟିଏ ଟିଣ କାହାଳୀ ଝୁଲାଅ । କାହାଳୀର ଉପରେ ମୁଠାଏ ଓଦାତୂଳା ଦିଅ । ଅଗ୍ରଭାଗର ରନ୍ଧ୍ର ମଧ୍ୟ ଏହି ଓଦାତୂଳା ଦ୍ୱାରା ବନ୍ଦ୍ କର । ଟିଣ କାହାଳୀର ଠିକ୍ ତଳେ କେରୋସିନ୍ ଡିବଟିକୁ ରଖି ଜାଳ ।

କିଛି ସମୟ ପରେ କାଦ୍ୱାଳୀର ଭିତର ଅଂଶକୁ ଲକ୍ଷ କର । ୧୦-୧୨ ଘଣ୍ଟା ପରେ ଲକ୍ଷକଲେ କାଦ୍ୱାଳୀର ଭିତର ଅଂଶରେ କଳା ପୁରିଯାଇଥିବାର ଦେଖାଯିବ । ଏହାପରେ ନିଶଠାରୁ କାଦ୍ୱାଳୀକୁ ଅଲଗା କରି ଆଣ ।

ଗୋଟିଏ କାଚ ଗିନାରେ କିଛି ଗମ୍ ପାଣିରେ ଭିଜାଇ ରଖ । କାଦ୍ୱାଳୀରୁ କଳାଗୁଣ୍ଡକୁ ଛଡ଼ାଇ ଏହି ଗିନା ମଧ୍ୟରେ ପକାଅ ଓ କଳାକୁ ଅଠାରେ ଭଲଭାବରେ ଫେଣ୍ଟି ମିଶାଅ । ଏହି କଳାରଙ୍ଗକୁ ଗୋଟିଏ କାଚ ବୋତଲ ମଧ୍ୟରେ ସାଇତି ରଖ । ଆବଶ୍ୟକ ସମୟରେ ଏହାକୁ କୌଣସି ସ୍ଥାନରେ ବୋଳାଯାଇପାରେ । ତୁମେ ଏହାକୁ କପରି ଓ କେଉଁଠାରେ ବ୍ୟବହାର କରିବ ଚିନ୍ତାକର ।

**କାରଣ** :—କେରୋସିନ୍ ଗୋଟିଏ ହାଇଡ୍ରୋକାର୍ବନ । ଏହାର ଦହନ ହେଲେ ଏଥିରୁ ଅଙ୍ଗାର ଓ ଅଙ୍ଗାରକାମ୍ଳ ବାଷ୍ପ ମୁଖ୍ୟତଃ ବାହାରିଥାଏ । ଅଙ୍ଗାରକାମ୍ଳ ବାୟୁରେ ମିଶିଯାଏ ଓ ଅଙ୍ଗାର କଣା ଗୁଡ଼ିକ କାଦ୍ୱାଳୀର କାନ୍ଥରେ ଘନୀଭୂତ ହୋଇ ଲାଗିଯାଏ । ଏହାକୁ ସୂକ୍ଷ୍ମ ଅଙ୍ଗାର, କାର୍ବନ୍ ସୁଟ୍ ବା ଆମର୍ଫସ୍ ଅଙ୍ଗାର କୁହାଯାଏ ।

**ବ୍ୟବହାର** :—ଉପରୋକ୍ତ କଳାର ଇଣ୍ଡିଆନ୍ ଇଙ୍କ୍ ପରି କାର୍ଯ୍ୟ କରେ । ଉପରୋକ୍ତ କଳାରକୁ ଗୁଣ୍ଡ ମଧ୍ୟରେ ଢାଳି ଦେଲେ ଶ୍ରେଷ୍ଠ ଶ୍ରେଷ୍ଠ କଲର୍ ଚପସ୍ ତିଆରି ହୁଏ । ଏହାକୁ ପାଣିରେ ମିଳାଇ ଇଣ୍ଡିୟାନ୍ ଇଙ୍କ୍ ପରି ବ୍ୟବହାର କରାଯାଇ ପାରେ । ବ୍ଲାକ୍ ହ୍ୱାଇଟ୍ ଫଟୋଗ୍ରାଫ୍ ଏହା ଦ୍ୱାରା ଅଙ୍କାଯାଏ ।

●

# ଡ୍ରାଇଁ ଟେବୁଲ୍ କଲର

**ଉପକରଣ —**

୧ । ଲ୍ୟାମ୍ପ୍ ବ୍ଲାକ୍     ୨ । ଇଥାଇଲ୍ ଆଲ୍‌କୋହଲ
୩ । ଜଳ     ୪ । ଝୁଣା



**ପରୀକ୍ଷା :—** ଗୋଟିଏ ଟିଣ କାହାଲୀ ଓ କେରୋସିନ ତୈଳ ବ୍ୟବହାର କରି ତୁମେ କାର୍ବନ୍ ପୁଟ୍ ସହଜରେ ସଂଗ୍ରହ କରି ପାରୁଛ । ଏହି ଧୂଳ୍ ଗୁଡ଼ିକୁ ଲ୍ୟାମ୍ପ୍ ବ୍ଲାକ୍ ମଧ୍ୟ କୁହାଯାଏ । ଏହି ପ୍ରଣାଳୀ ଅନୁଯାୟୀ କିଛି ଲ୍ୟାମ୍ପ ବ୍ଲାକ ସଂଗ୍ରହ କର ।

ଗୋଟିଏ କାଚ ବୋତଲରେ କିଛି ଇଥାଇଲ୍ ଆଲ୍‌କୋହଲ୍ ନେଇ ସେଥିରେ କିଛି ଝୁଣାଗୁଣ୍ଡ ପକାଅ । ୧୦/୧୨ ଘଣ୍ଟା ପରେ ଝୁଣା ଏଥିରେ ତରଳି ଯିବାକୁ ଲାଗିବ । ବୋତଲକୁ ଭଲ ଭାବରେ ଫେଣ୍ଟି ଝୁଣା ଓ ଆଲ୍‌କୋହଲ୍‌ର ଦ୍ରବଣ ତିଆରି କର । ଏଥିରେ ଲ୍ୟାମ୍ପ୍‌ବ୍ଲାକ୍ ମିଶାଇ ପୁଣି ଭଲ ଭାବରେ ଫେଣ୍ଟ । କଲର୍‌କୁ ଅଧିକ କଳା କରିବାକୁ ହେଲେ ଅଧିକ ପରିମାଣ ଲ୍ୟାମ୍ପ୍ ବ୍ଲାକ୍ ମିଶାଅ । କଲର୍ ପ୍ରସ୍ତୁତ ହୋଇ ଯିବା ପରେ ଏଥିରେ ଆବଶ୍ୟକୀୟ ପରିମାଣ ପାଣି ମିଶାଅ ।

ତୁମେ ତୁମ ବିଜ୍ଞାନାଗାର ପାଇଁ ଗୋଟିଏ ଓ୍ୱାର୍କିଂ ଟେବୁଲ୍ ତିଆରି କରିଛ । ଏହା ଉପରେ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ପରୀକ୍ଷା କରି-ବାକୁ ହେବ । ଏହା ଉପରେ ବିଭିନ୍ନ ପ୍ରକାର ରାସାୟନିକ ପଦାର୍ଥ ପଡ଼ି ଅନେକ ଦାଗ ସୃଷ୍ଟି ହେବ । ଅନ୍ୟ ରଙ୍ଗ ବୋଳି ଦେଲେ ଦାଗ ଗୁଡ଼ିକ ସ୍ପଷ୍ଟ ଦେଖାଯିବ । ତେଣୁ ବ୍ଲାକ୍ କଲର୍ ଏହା ଉପରେ ଦେବାକୁ ହେବ । ଏହି ଟେବୁଲ ପାଇଁ ତୁମେ ଯେଉଁ କଲର ପ୍ରସ୍ତୁତ କରିଛ । ତାହା ଟେବୁଲକୁ ଠିକ୍ ଭାବରେ କଲର୍ କରି ପାରୁଛି କି ନାହିଁ ଦେଖ ।

**କାରଣ** :— ଆଲ୍‌କୋହଲ୍‌ରେ କାର୍ବନ ସୁଟ୍ ଜଳ ଭାବରେ ମିଳାଇ ଯାଏ । ଅବଶ୍ୟ ଦ୍ରବଣ ପ୍ରସ୍ତୁତ ହୁଏ ନାହିଁ । କାରଣ କାର୍ବନ୍‌ର ଉପଯୁକ୍ତ ଦ୍ରାବକ ଗୋଟିଏ ହେଲେ ନାହିଁ । ଧୁଣା ଆଲ୍‌କୋହଲରେ ଦ୍ରବଣୀୟ ହୋଇ ଗୋଟିଏ ଲିକ୍ୟୁର ବେସ୍ ପ୍ରସ୍ତୁତ କରେ । ଏହି ବେସ୍‌ରେ ଲ୍ୟାମ୍ପ୍ ବ୍ଲାକ୍ ଏକ ଓ୍ୱାଟର୍ ପ୍ରୁଫ୍ କଲର୍ ପ୍ରସ୍ତୁତ କରେ ।

**ବ୍ୟବହାର** :— ତୁମର ଓ୍ୱାର୍କିଂ ଟେବୁଲ, ଡ୍ରଇଁଙ୍ଗ୍ ଟେବୁଲ ଗୁଡ଼ିକୁ ତୁମେ ଏପରି ରଙ୍ଗୀନ୍ କରି ପାରିବ ।



# ସୁଗାର୍ ଚାର୍କୋଲ୍

**ଉପକରଣ :—**

୧ । ଟିଣ ଡବା — ୨ । ଚିନି
୩ । ଆସ୍ — ୪ । ନାଇଟର୍
୫ । ଟିଣ କାହାଳୀ — ୬ । ମହମବତୀ
୭ । ଲୁହାକଣ୍ଟା



**ପରୀକ୍ଷା :—**ଗୋଟିଏ ଟିଣ ଡବା ନିଅ । ଡବାର ତଳ ଅଂଶ ଓ ଓ ଉପର ଅଂଶରେ କେତୋଟି ରନ୍ଧ୍ର କର । ଡବା ମଧ୍ୟରେ ଗୋଟିଏ ମହମବତୀ ଜାଳ ।

ଗୋଟିଏ ଟିଣ କାହାଳୀ ନେଇ ତାହାର ତଳ ଅଂଶକୁ କାଟି ଅଲଗା କର । ଏହି କାହାଳୀ ମଧ୍ୟରେ ଖଣ୍ଡିଏ ପତଳା କାଗଜ ରଖ । ଗୋଟିଏ ପାତ୍ର ମଧ୍ୟରେ କିଛି ଚିନି ନିଅ । ସେଥିରେ ଚୁଲ୍ଲୀରୁ କିଛି ପାଉଁଶ ଆଣି ମିଶାଅ । ଏହାପରେ ଏଥିରେ ଅଳ୍ପ ନାଇଟର୍ ନେଇ ମିଶାଅ । ଏହି ମିଶ୍ରଣକୁ ଭଲଭାବରେ ଗୁଣ୍ଡ କରି ପରସ୍ପର ସହିତ ଫେଣ୍ଟି ମିଶାଅ । ଏହି ମିଶ୍ରଣକୁ କାହାଳୀ ମଧ୍ୟରେ ଦିଅ । କାହାଳୀଟିକୁ ନେଇ ଟିଣ ଡବା ଉପରେ ରଖ । କିଛି ସମୟ ଅପେକ୍ଷା କର । କ'ଣ ଦେଖୁଛ ?

କାହ୍ୱାଲୀ ମଧ୍ୟରେ ଥିବା ମିଶ୍ରଣ ଗୋଟାଏ ବଡ଼ ନିଆଁ ସୃଷ୍ଟି କରି ଜଳି ଯାଉଛି । ନିଆଁ ଜଳି ଲିଭିଯିବା ପରେ କାହ୍ୱାଲି ମଧ୍ୟରେ ତୁମେ କ'ଣ ଦେଖୁଛ ? କାହ୍ୱାଲି ମଧ୍ୟରେ ମେଞ୍ଚାଏ କଳା ପଦାର୍ଥ ପଡ଼ି ରହିଥିବାର ଦେଖାଯିବ । ଏହା କ'ଣ ? ଏହା ହେଉଛି ସୁଗର୍କୋଲ୍ ।

**କାରଣ** :—ଚିନି ବା ଶର୍କରା ଗୋଟିଏ ପ୍ରକାର ହାଇଡ୍ରୋକାର୍ବନ୍ । ହାଇଡ୍ରୋକାର୍ବନ୍ ଅଙ୍ଗାର ଓ ଉଦ୍‌ଜାନର ଏକ ଯୌଗିକ । ଶର୍କରା ଜାତୀୟ ହାଇଡ୍ରୋକାର୍ବନରେ ଅମ୍ଳଜାନ ମଧ୍ୟ ଥାଏ । ନାଇଟର୍ ଏକ ଜାରକ ପଦାର୍ଥ । ଏହା ଶର୍କରାର ଜାରଣ କରି ଅଙ୍ଗାରକାମ୍ଳ ଓ ଜଳୀୟବାଷ୍ପ ଉତ୍ପନ୍ନ କରେ । କାହ୍ୱାଲୀରେ ଅଙ୍ଗାର ପଡ଼ି ରହେ ।

**ବ୍ୟବହାର** : ଏହା ବିଶୁଦ୍ଧ କାର୍ବନ୍ । ପ୍ରଦର୍ଶନୀରେ ଏହି ପ୍ରକାର କାର୍ବନ୍‌କୁ ଦର୍ଶାଯାଇ ପାରେ ।



# ସୁପଲ୍ଲହ୍ ସୋପ୍

**ଉପକରଣ :—**

୧ । ଲ୍ୟାମ୍ପ୍ ବ୍ଲାକ୍      ୨ । କାଚଗିନା

୩ । ଗ୍ଲିସେରିନ୍      ୪ । ଓ୍ୱାକ୍ସ

୫ । ଫ୍ରେଞ୍ଚଚକ୍      ୬ । ସ୍ପିରିଟ୍ ଦୀପ



**ପରୀକ୍ଷା :**—ଟେବୁଲ୍ ଉପରେ ଗୋଟିଏ ସ୍ପିରିଟ୍ ଦୀପ ଓ ତାହା ଉପରେ ଗୋଟିଏ ଷ୍ଟାଣ୍ଡ୍ ରଖ ।

ଗୋଟିଏ ଅଗ୍ନିସହ କାଚଗିନା ବା ବିକର୍ ନେଇ ସେଥିରେ କିଛି ଲ୍ୟାମ୍ପବ୍ଲାକ୍ ନିଅ । ଖଣ୍ଡିଏ ମହମକୁ ଛୁରୀରେ ଖଣ୍ଡ ଖଣ୍ଡ କରି କାଟ କିମ୍ବା ଏହାକୁ ଗ୍ରେଟି ମେଞ୍ଚାଏ ଫ୍ଲେକ୍ସ ବାହାର କର । ଏହି ମହମଗୁଣ୍ଡ ବା ଫ୍ଲେକ୍ସଗୁଡ଼ିକୁ ମଧ୍ୟ ବିକର୍‌ରେ ପକାଅ । ଏଥିରେ ଫ୍ରେଞ୍ଚଚକ୍‌କୁ ଭଲ ଭାବରେ ଗୁଣ୍ଡ କରି ମିଶାଅ । ବର୍ତ୍ତମାନ ସ୍ପିରିଟ୍ ଦୀପଟିକୁ ଜାଳ ଓ କାଚ-ଗିନାଟିକୁ ଷ୍ଟାଣ୍ଡ ଉପରେ ରଖ । କାଚଗିନା ମଧ୍ୟରେ ମହମ ଭଲ ଭାବରେ ତରଳଗଲେ ଖଣ୍ଡିଏ କାଚରଡ଼୍ ଦ୍ୱାରା ମିଶ୍ରଣକୁ ଭଲଭାବରେ ଘାଣ୍ଟ । ଚକ୍ ଓ ଲ୍ୟାମ୍ପବ୍ଲାକ୍ ଏଥିରେ ଭଲ ଭାବରେ ମିଶ୍ରଣ ପର୍ଯ୍ୟନ୍ତ ଘାଣ୍ଟ । ମିଶ୍ରଣ ଗାଢ଼

ହୋଇ ଆସିବା ପରେ ସେଥିରେ କଛୁ ଗ୍ଲିସେରନ୍ ମିଶାଅ ଓ ପୁଣି ମିଶ୍ରଣକୁ ଘାଣ୍ଟି ଦଅ ।

ଗୋଟିଏ ଟିଣଡ଼ବାର ଖୋଲ ଟେବୁଲ୍ ଉପରେ ରଖ କମ୍ବା ଗୋଟିଏ ଟ୍ରେ ମଧ୍ୟରେ ସାମାନ୍ୟ ପରମାଣରେ ପାଣିଦେଇ ସେଥିରେ ଟିଣ ଡ଼ବାର ଖୋଲ କେତୋଟି ରଖ । ଏହା ମଧ୍ୟରେ ଉପରର ମିଶ୍ରଣକୁ ଢ଼ାଳ, ଯେପରି ଖୋଲ ଗୁଡ଼ିକ ମଧ୍ୟରେ ମିଶ୍ରଣ ପୂର୍ଣ୍ଣ ଭାବରେ ପୂରଯିବ । ଲକ୍ଷ୍ୟ ରଖ । ମିଶ୍ରଣ ଥଣ୍ଡା ପାଇ ଟାଣ ହେବାପରେ ତାହାକୁ ଖୋଲମଧ୍ୟରୁ ଅଲଗା କର ଦଅ । ରଙ୍ଗୀନ୍ ଜମ୍ଭୁର କେତେଖଣ୍ଡ କାଟି ତାହା ମଧ୍ୟରେ ଏହି ରଙ୍ଗ ମୁଣ୍ଡା ଗୁଡ଼ିକୁ ରଖ ଓ ଭଲଭାବରେ ପ୍ୟାକିଂ କର । ଏହା ଏକ ପ୍ରକାର ବ୍ଲାକ୍ ପଲସ୍ । ଏହାକୁ ତୁମେ ତୁମ ଯୋତା ରଙ୍ଗ କରବାରେ ବ୍ୟବହାର କର ପାରବ । ଏହାକୁ ବ୍ଲାକ-ସୁ ପଲସ୍ ସୋପ୍ ତୁମେ କହପାରବ ।

**କାରଣ** :– ମହମ ଅଙ୍ଗାରର ଏକ ପ୍ରକାର ଦ୍ରାବକ ପରି କାର୍ଯ୍ୟକରେ । ଉତ୍ତପ୍ତ ତରଳ ମହମରେ ଅଙ୍ଗାର ମିଳାଇ ଦିବାପରେ ତକ୍ର ଅଣୁଗୁଡ଼ିକ ତାହା ସହତ ଭଲ ଭାବରେ ମିଶିଯାଏ । ମହମ ଶୁଖିଗଲେ ଟାଣ ହୁଏ । ତେଣୁ ବ୍ଲାକ୍ ସୋପ୍ ପ୍ରସ୍ତୁତ ହୁଏ ।।

**ବ୍ୟବହାର** :— ନଜ ନଜର ଜୋତା ଓ ବେଲଟ୍ ରଙ୍ଗ କରବା ପାଇଁ ଏହି ବ୍ଲାକ୍ ସୋପ୍ ଭଲ କାମ ଦଏ । ତେଣୁ ତୁମେ ନଜେ ଏଧରଣର ପଲିସ୍ ସୋପ୍ ତଆର କର ।



# ଡ଼ାର୍କରୁମ୍ କ୍ଲଥ୍

**ଉପକରଣ :—**

୧। ଲ୍ୟାମ୍ପ୍‌ବ୍ଲାକ୍ 　　 ୨। ଚୋଲକ୍

୩। ମିଥାଇଲ ଆଲ୍‌କୋହଲ୍ 　　 ୪। କାଚଗିନା

୫। କାଚରଡ୍



**ପରୀକ୍ଷା** :— ତୁମେ ଲ୍ୟାମ୍ପ୍‌ବ୍ଲାକ୍ କିପରି ପ୍ରସ୍ତୁତ ହୁଏ ତାହା ପୂର୍ବରୁ ଜାଣିଛ । ସେହି ଉପାୟରେ କିଛି ଲ୍ୟାମ୍ପ୍ ବ୍ଲାକ୍ ପ୍ରସ୍ତୁତ କରି ନିଅ । ଗୋଟିଏ କାଚଗିନାରେ କିଛି ମିଥାଇଲ୍ ଆଲ୍‌କୋହଲ୍ ନେଇ ସେଥିରେ ଏହି ଲ୍ୟାମ୍ପ୍ ବ୍ଲାକ୍ ପକାଅ । ଏହା ସହିତ କିଛି ଚୋଲକ୍ ଗୁଣ୍ଡ କରି ମଧ୍ୟ ମିଶାଅ । ୫/୬ ଘଣ୍ଟା ପରେ ଏସବୁକୁ ଗୋଟିଏ କାଠରଡ୍ ଦ୍ୱାରା ଭଲ ଭାବରେ ଫେଣ୍ଟି ମିଶାଅ । ଏକ ଲିଟର ତରଳ ପଦାର୍ଥ ଧରିବା ଭଳି ଗୋଟିଏ କାଚ ବିକର ନେଲେ ଚଳିବ । ଲ୍ୟାମ୍ପ୍‌ବ୍ଲାକ୍‌ର ମିଶ୍ରଣ ଭଲ ଭାବରେ ହୋଇଯିବା ପରେ ସେଥିରେ ଅଧିକ ପରିମାଣର ଆଲ୍‌କୋହଲ୍ ମିଶାଅ । କଲର୍ ଖୁବ୍ ପତଳା ହୋଇଯିବା ପରେ ବିକର୍ ମଧ୍ୟରୁ ଏହାକୁ ବାହାର କରି ଗୋଟିଏ କାଚ ବୋତଲ ମଧ୍ୟରେ ରଖ ।

ତୁମ ବିଜ୍ଞାନାଗାର ମଧ୍ୟରେ ତୁମେ ଗୋଟିଏ ଡ଼ାର୍କରୁମ୍ କରିବାକୁ ଯାଉଛ । ଏଥିପାଇଁ ଆବଶ୍ୟକ ହେଉଛି ତୁମର ବ୍ଲାକ ସ୍କ୍ରିନ୍ । ମନେକର

ବ୍ଲାକ୍ ସ୍କ୍ରିନ୍ର ଦୈର୍ଘ୍ୟ 5 ମି. ଓ ପ୍ରସ୍ଥ 2 ମି. । ଏହି ମାପର ଦୁଇଖଣ୍ଡି ସ୍କ୍ରିନ୍ କର । ଏହା ଉପରେ ଉପରୋକ୍ତ ରଙ୍ଗକୁ ବ୍ରସ୍ ସାହାଯ୍ୟରେ ବୋଳ । ତୁମ ବିଜ୍ଞାନାଗାରର ପ୍ରସ୍ଥ 5ମି. ହୋଇଥିଲେ ଘରର ଗୋଟିଏ ପାର୍ଶ୍ୱରେ ତୁମେ ଏହି ଡ଼ାର୍କରୁମ୍କୁ ସହଜରେ ତିଆରି କରି ପାରିବ ।

**କାରଣ :**— ଶେଲାକ୍ ଓ ଆଲ୍କୋହଲ୍ର ମିଶ୍ରଣ ମଧ୍ୟରେ ଲ୍ୟାମ୍ପ୍ ବ୍ଲାକ୍ ଭଲଭାବରେ ମିଶିଯାଏ ଓ ଏକ ଓ୍ୱାଟର ପ୍ରୁଫ୍ ବ୍ଲାକ କଲର ପ୍ରସ୍ତୁତ ହୁଏ ।

**ବ୍ୟବହାର :**— ବିଜ୍ଞାନାଗାରମାନଙ୍କରେ ଡ଼ାର୍କରୁମ୍ ପ୍ରସ୍ତୁତ କରିବା ପାଇଁ ଏହି ବ୍ଲାକ୍ ସ୍କ୍ରିନ ତୁମେ ଘରେ ତିଆରି କରି ବ୍ୟବହାର କରିପାରିବ । ବଜାରରୁ କଳା କନା ଅଧିକ ଦାମ ଦେଇ କିଣିବାକୁ ପଡ଼ିବ ନାହିଁ ।



# କାର୍ବନ୍ ବୋଟ୍

**ଉପକରଣ :—**

୧ । ଟିଣ ଟ୍ରେ
୨ । ବେସ୍ ବୋଟ୍
୩ । ସ୍ପିରଟ୍ ଲ୍ୟାମ୍ପ୍
୪ । କାର୍ବନ୍
୫ । ପୋଟାସିୟମ୍ ନାଇଟ୍ରାଇଟ୍



**ପରୀକ୍ଷା** :—ଗୋଟିଏ ଫ୍ଲେଟ ଟିଣଥାଳୀ ବା ଟ୍ରେ ଆଣ । ଟେବୁଲ ଉପରେ ଗୋଟିଏ ଷ୍ଟାଣ୍ଡ ତଳେ ସ୍ପିରଟ୍ ଲ୍ୟାମ୍ପଟିଏ ରଖ । ଟ୍ରେ ମଧ୍ୟରେ ପୋଟାସିୟମ୍ ନାଇଟ୍ରେଟ୍ କିଛି ଦିଅ । ବର୍ତ୍ତମାନ ସ୍ପିରଟ୍ ଲ୍ୟାମ୍ପଟିକୁ ଜାଳ ।

ଟ୍ରେ ମଧ୍ୟରେ ପୋଟାସିୟମ୍ ନାଇଟ୍ରେଟ୍‌ର ସ୍ଫଟିକଗୁଡ଼ିକୁ ଲକ୍ଷକର । ଟ୍ରେଟି ଗରମ ହେବା ସଙ୍ଗେ ସଙ୍ଗେ ପୋଟାସିୟମ୍ ନାଇଟ୍ରେଟର ସ୍ଫଟିକ ତରଳିବାକୁ ଆରମ୍ଭ କରିବ ଏବଂ ଶେଷରେ ସମ୍ପୂର୍ଣ୍ଣରୂପେ ତରଳିଯିବ । ବଡ଼ ଅଙ୍ଗାର ଖଣ୍ଡିଏ ନେଇ ତାହାକୁ ଛୁରୀରେ କାଟି ବୋଟ୍ ପରି କର ।

ଏହାକୁ ଚିମୁଟାରେ ଧରି ଉତ୍ତପ୍ତକଲେ ଏବଂ ଏହା ଅତ୍ୟଧିକ ତାତିଗଲା ପଡ଼ିଗଲେ ଟେଷ୍ଟ ମଧ୍ୟରେ ଛାଡ଼ିଦିଅ । ତୁମେ ଏବେ କ'ଣ ଲକ୍ଷ୍ୟ କରୁଛ ? ଟେଷ୍ଟ ମଧ୍ୟରେ ଜ୍ୱଳନ୍ତ ବୋଟ୍‌ଟି ଗତିକରୁଥିବାର ତୁମେ ଦେଖି ପାରିବ । ବୋଟ୍‌ଟି ଟେଷ୍ଟ ମଧ୍ୟରେ ଅନବରତ ଘୂରୁଥିବାରୁ ଦେଖିବାକୁ କେତେ ମଜା ନ ଲାଗୁଛି ?

**କାରଣ** :—ପୋଟାସିୟମ୍ ନାଇଟ୍ରେଟ୍ ଗୋଟିଏ ଜାରକ ପଦାର୍ଥ । ଏହା ଉତ୍ତପ୍ତ ହେବାରୁ ପୋଟାସିୟମ୍ ନାଇଟ୍ରାଇଟ୍ ଓ ଅମ୍ଳଜାନ ଉତ୍ପନ୍ନ ହୁଏ । ଅମ୍ଳଜାନ ଅଙ୍ଗାର ଖଣ୍ଡଟିକୁ ଜାଳି ନିଆଁ ସୃଷ୍ଟି କରେ । ବୋଟ୍‌ଟି ଆସ୍ତେ ଆସ୍ତେ ଜଳି ହାଲୁକା ହେବାରୁ ଘୂରି ଘୂରି ଯାଏ ।

**ବ୍ୟବହାର** :—ବିଜ୍ଞାନାଗାରରେ କିମ୍ବା ପ୍ରଦର୍ଶନୀମାନଙ୍କରେ ତୁମେ ଏହି ପରୀକ୍ଷାଟିକୁ ସହଜରେ କରି ଦର୍ଶକମାନଙ୍କୁ ଯଥେଷ୍ଟ ଆନନ୍ଦ ଦେଇପାରିବ ।



# ସନ୍ ଲାଇଟ୍ ଲ୍ୟାମ୍ପ୍

**ଉପକରଣ :—**

୧। ଗ୍ଲାସ ଇଟ୍ ରଡ୍
୨। ଟେଷ୍ଟ ଟ୍ୟୁବ୍
୩। ଟିଣଷ୍ଟ୍ରିପ୍
୪। ଟିଣଚକି
୫। କାଚବୋତଲ
୬। ଷ୍ଟିଲ୍ ଟ୍ୟୁବ୍ ସକେଟ୍
୭। ବତୀ
୮। କିରୋସିନ୍
୯। ପୋର୍ସିଲେନ୍ କପ୍
୧୦। ଜିଙ୍କ୍ ଅକ୍ସାଇଡ୍
୧୧। କ୍ୟାଲ୍ସିୟମ୍ ଅକ୍ସାଇଡ୍



**ପରୀକ୍ଷା :**—ଗୋଟିଏ ଟିଣ ଠିପି ନିଅ । ଏହାର ମଧ୍ୟ ଭାଗରେ ରନ୍ଧ୍ର କରି ଗୋଟିଏ ପୋର୍ସିଲେନ୍ କପ୍ ବସାଅ । ଏହି ବଳଟି ଦେଖିବାକୁ ଗୋଟିଏ ସିଲିଣ୍ଡର୍ ଭଳି ହେବ ଏବଂ ତାହାର କେନ୍ଦ୍ରଭାଗରେ ଗୋଟିଏ ରନ୍ଧ୍ର ରହିବ । ଗୋଟିଏ ସ୍ଲେଟ୍ ଗ୍ଲାସ ଦେଇଥିବୁ ତୁମେ ପ୍ଲାଷ୍ଟର ଅଫ୍ ପ୍ୟାରିସ୍ ସାହାଯ୍ୟରେ ଏପରି ଗୋଟିଏ କପ୍ ତିଆରି କରିପାରିବ । ଏହି କପର୍

କେନ୍ଦ୍ରଭାଗରେ ଗୋଟିଏ ହାଲୁକା ଗ୍ରାଫାଇଟ୍ ରଡ୍ ଲଗାଅ । ଗ୍ରାଫାଇଟ୍ ଦଣ୍ଡ ଉପରେ ଜିଙ୍କ ଅକ୍ସାଇଡ୍ ଓ କ୍ୟାଲ୍‌ସିୟମ୍ ଅକ୍ସାଇଡ୍ ଗମ୍ ସାହାଯ୍ୟରେ ମିଶାଇ ଲଗାଅ । ଟିଣଠିପି ଉପରେ ଟିଣଷ୍ଟ୍ରିପ୍ ସାହାଯ୍ୟରେ ଗୋଟିଏ କ୍ଲିପ୍ ତିଆରିକରି ଲଗାଅ ; ଗୋଟିଏ ଟେଷ୍ଟଟ୍ୟୁବ୍‌ର ତଳ ଅଂଶକୁ କାଟି ଏହି କ୍ଲିପ୍ ଦେହରେ ଲଗାଅ । ଟିଣ ଷ୍ଟ୍ରିପ୍ କାଟି ଦୁଇଟି କ୍ଲାମ୍ପ୍ ପ୍ରସ୍ତୁତ କର ଏବଂ ଏହି କ୍ଲାମ୍ପ୍ ଦେହରେ ଏହାକୁ ଲଗାଅ ।

ଗୋଟିଏ କାଚବୋତଲ ମଧ୍ୟରେ କିଛି କରୋସିନ୍ ନେଇ ରଖ । ଠିପିଦେହରେ ଗୋଟିଏ ସାଇକେଲ୍ ଭଲଭ୍ ଟ୍ୟୁବ୍ ଲଗାଅ ଓ ଏହା ଦେହରେ ଗୋଟିଏ ହାଲୁକାବତୀ ଲଗାଅ । ବର୍ତ୍ତମାନ ଲ୍ୟାମ୍ପର ଉପର ଅଂଶଟିକୁ କ୍ଲାମ୍ପ ସାହାଯ୍ୟରେ ବୋତଲର ଅଗ୍ରଭାଗରେ ଲଗାଅ । ବତୀଟିକୁ ଜାଳିଦେଲେ ତାହା କପ୍ ମଧ୍ୟରେ ଜଳିବାକୁ ଲାଗେ । ଗ୍ରାଫାଇଟ୍ ରଡ୍ ଉତ୍ତପ୍ତ ହେବାପରେ ଲ୍ୟାମ୍ପ୍‌ରୁ କୌଣସି ଆଲୋକ ବାହାରୁଛି କି ନାହିଁ ଦେଖ ।

**କାରଣ** :—ହାଲୁକା ଗ୍ରାଫାଇଟ ଶୀଘ୍ର ଉତ୍ତପ୍ତ ହୋଇଯାଏ ଏବଂ ଆଲୋକ ବିକିରଣ କରେ । ଜିଙ୍କ୍ ଅକ୍ସାଇଡ୍ ଓ ଗମ୍ କ୍ୟାଲସିୟମ୍ ଅକ୍ସାଇଡ୍‌ର ବାଇଣ୍ଡର୍ ହିସାବରେ କାର୍ଯ୍ୟକରେ । କ୍ୟାଲ୍‌ସିୟମ୍ ଅକ୍ସାଇଡ୍ ଉତ୍ତପ୍ତହୋଇ ଶୀଘ୍ର ଚୂନାଲୋକ ପ୍ରଦାନ କରେ ।

**ବ୍ୟବହାର** :—ପରୀକ୍ଷାଟି ଠିକ୍ ଭାବରେ କରିପାରିଲେ ଲ୍ୟାମ୍ପରୁ ଅକ୍ଳେଶରେ ଶୁଭ୍ରାଲୋକ ବାହାରିବ । ଏହାକୁ ଗୋଟିଏ ସନଲାଇଟ ଲ୍ୟାମ୍ପ ତୁମେ କହିପାରିବ ଏବଂ ପ୍ରଦର୍ଶନୀରେ ତୁମେ ଏହାକୁ ଦେଖାଇ ପାରିବ ।

●

# କାର୍ବନ୍ ଫାୟାର୍

**ଉପକରଣ : –**

| | |
|---|---|
| ୧ । ଟିଣଡବା | ୨ । ଲୁହାଚକ |
| ୩ । ଲବଣ | ୪ । ଚାର୍କଲ |
| ୫ । ଗନ୍ଧକ | ୬ । ନାଇଟର୍ |
| ୭ । ଗମ୍ | |



**ପରୀକ୍ଷା :–** ଗୋଟିଏ ଟିଣଡବା ନିଅ । ଏହାର ଉଚ୍ଚତା (୧୦-୧୫) ସେ.ମି ହେବା ଭଲ । ଏହାର ଉପର ଓ ତଳ ଅଂଶରେ କେତୋଟି ରନ୍ଧ୍ର କର । ଲୁହା ଫଏଲରୁ ଗୋଟିଏ ଚକ୍ର କାଟ । ଚକର ବ୍ୟାସ ଟିଣଡବାର ବ୍ୟାସ ଠାରୁ ସାମାନ୍ୟ ବଡ଼ ହେବା ଦରକାର । ଏହି ଚକର କେନ୍ଦ୍ର ଭାଗରେ ଗୋଟିଏ ଛୋଟ ରନ୍ଧ୍ର କର । ଏହି ରନ୍ଧ୍ରରେ ଗୋଟିଏ ଗ୍ରାଫାଇଟ୍ ଚକ ଲଗାଅ ।

କିଛି ଗନ୍ଧକ ଓ ନାଇଟର୍ ନିଅ । ଏହାକୁ ଭଲଭାବରେ ଗୁଣ୍ଡ କର । ଏଥିରେ ସମପରିମାଣ କାର୍ବନ୍ ଡଷ୍ଟ୍ ମିଶାଅ । ମିଶ୍ରଣରେ ଗମ୍ ମିଶ୍ରିତ ଜଳ ଆବଶ୍ୟକ ପରିମାଣରେ ମିଶାଅ । ମିଶ୍ରଣକୁ ଭଲଭାବରେ ଫେଣ୍ଟି ଦେଲେ ତାହା ଗୋଟିଏ ମଣ୍ଡପରି ହୋଇଯିବ । ଏହି ମଣ୍ଡକୁ ହାତରେ ବଳି ଖଣ୍ଡ ଖଣ୍ଡ କରି କାଟ ଏବଂ ତଳ ଅଂଶକୁ ଟେବୁଲ ଉପରେ ଛେଚି କୋନ୍ ପରି କର । ଏହି କାର୍ବନ୍ କୋନ୍ ଗୁଡ଼ିକୁ ଖରାରେ ଶୁଖାଇ ଦିଅ । ଶୁଖିଯିବା ପରେ ସେହି କୋନ୍ ଗୁଡ଼ିକ ଉପରେ ଛୋଟ ଛୋଟ ନାଲିକାଗଜ ଗୁଡ଼ାଇ ଦିଅ । ଏଗୁଡ଼ିକୁ ଗୋଟିଏ କାଗଜ ପେଡାରେ ସାଇତିରଖ ।

ବର୍ତ୍ତମାନ ଟିଣଡବା ମଧ୍ୟରେ ଗୋଟିଏ ମହମବତୀ ଜାଳ । ଗ୍ରାଫାଇଟ୍ ବନ୍ଦଯୁକ୍ତ ଲୁହାଚକକୁ ଡବାର ଉପରିଭାଗରେ ରଖ । କିଛି ସମୟ ପରେ ଗ୍ରାଫାଇଟ୍ ଚକଉପରେ ଅଙ୍ଗାରଖଣ୍ଡ ବା କୋନ୍‌ରୁ ଗୋଟିଏ ନେଇ ରଖ । କ'ଣ ଦେଖୁଛ ? କୋନ୍‌ଟି ହଠାତ୍ ଜଳି ନିଆଁ ହୋଇଯାଉ-ଥିବାର ଦେଖାଯାଉଛି ।

**କାରଣ** :—ନାଇଟ୍‌ର ଗୋଟିଏ ଜାରକ୍ ପଦାର୍ଥ । ଏହା ଅଙ୍ଗାରକୁ ଜାରଣ କରେ ଏବଂ ଗନ୍ଧକ ନିଆଁ ସୃଷ୍ଟି କରିବାରେ ସାହାଯ୍ୟ କରେ ।

**ବ୍ୟବହାର** :—ଗୋଟିଏ ପ୍ରଦର୍ଶନୀରେ ଏହି ପରୀକ୍ଷାଟିକୁ ସହଜରେ ଦର୍ଶାଇ ପାରେ ।



# କାର୍ବନ୍ ସୁଟସ୍

**ଉପକରଣ :—**

୧ । ଭୋଲ୍ ୨ । ଲୁହାଚକ

୩ । ଗମ୍ ୪ । ଟର୍ମେଣ୍ଟାଇନ୍

୫ । ଗ୍ରାଫାଇଟ୍ ୬ । ଟିଣକ୍ଲିପ୍

୭ । କାଠପଟା



**ପରୀକ୍ଷା :-** ଲୁହା ବା ଟିଣ ଫଏଲ୍‌ରୁ ଗୋଟିଏ ଗ୍ଲେଟ ଚକ କାଟ । ଚକର ମଧ୍ୟଭାଗରେ ଗୋଟିଏ ରନ୍ଧ୍ର କର । ଏହି ରନ୍ଧ୍ରରେ ଗୋଟିଏ ଗ୍ରାଫାଇଟ୍ ଚକ ଲଗାଅ । ଟିଣ କ୍ଲିପ୍ ଦୁଇଖଣ୍ଡ ନିଅ । ଯେପରି ଉଭୟର ଆକାର ସମାନ ହେବ । ଖଣ୍ଡିଏ କାଠ ପଟା ଉପରେ ଏହି କ୍ଲିପ୍ ଦୁଇଟିକୁ କଣ୍ଟା ସାହାଯ୍ୟରେ ଲଗାଅ । କ୍ଲିପ୍‌ର ଅଗ୍ରଭାଗକୁ ସମାନ୍ୟ ବଙ୍କାଇ ଦିଅ । ଏହି କ୍ଲିପ୍ ଉପରେ ଲୁହାଚକଟିକୁ ରଖ ।

ଖଣ୍ଡିଏ କୋଇଲା ନେଇ ତାହାକୁ ଗୁଣ୍ଡକର । ଏହି ଗୁଣ୍ଡରେ କିଛି ଗମ୍ ଓ ଟର୍ପେଣ୍ଟାଇନ୍ ମିଶାଅ । ମିଶ୍ରଣକୁ ଉଲଗ୍ଭାବରେ ଘାଣ୍ଟ । ମଣ୍ଡକୁ ଖୁବ୍ ଘନ କର । ଏହି ମଣ୍ଡକୁ ହାତରେ ବଳି କେତୋଟି ଗୋଲରେ ପରିଣତ କର । ଗୋଲଗୁଡ଼ିକୁ ଖରାରେ ଶୁଖାଅ ଏବଂ ଉପରେ ଗୋଟିଏ ଲେଖାଏ ପତଳା କାଗଜ ଗୁଡ଼ାଅ । ଏଗୁଡ଼ିକ ଏକ ପ୍ରକାର କାର୍ବନ ଗୋଲ ହେବ ।

ଗ୍ରାଫାଇଟ୍ ଚକର ଠିକ୍ ତଳେ ଗୋଟିଏ ମହମବତୀ ଜାଳ ଓ ଗ୍ରାଫାଇଟ୍ ଚକ ଉପରେ ଗୋଟିଏ କାର୍ବନ ଗୋଲ ରଖ ଏବଂ ଗୋଲଟିକୁ ଲକ୍ଷକର । ଗୋଲଟି ଆସ୍ତେ ଆସ୍ତେ ଉତ୍ତପ୍ତ ହେଉଥିବା ବେଳେ ସେଥିରୁ ଆସ୍ତେ ଆସ୍ତେ ଧୂଆଁ ବାହାରିବାର ଦେଖାଯିବ । ଗୋଲଟି ଜଳୁଥିବା ପର୍ଯ୍ୟନ୍ତ ସେଥିରୁ ପ୍ରଚୁର ପରିମାଣର ଧୂଆଁ ବାହାରି ଚତୁର୍ଦ୍ଦିଗରେ ଖେଳାଇ ହେଉଥିବାର ଦେଖାଯିବ ।

**କାରଣ** :—କୋଇଲା ମଧ୍ୟରେ ମିଥେନ୍ ଭଳି ବିଭିନ୍ନ ପ୍ରକାର ହାଇଡ୍ରୋକାର୍ବନ୍ ଶ୍ରେଣୀର ଦହନୀୟ ଗ୍ୟାସ୍ ଥାଏ । କୋଇଲା ଉତ୍ତପ୍ତ ହେଲେ ଏହି ଦହନୀୟ ଗ୍ୟାସ୍ ଜଳିବାକୁ ଲାଗେ ଏବଂ କୋଇଲାରୁ ସୂକ୍ଷ୍ମ କାର୍ବନ୍ କଣିକା ବା ସୁଟ୍ ଗୁଡ଼ିକ ବାହାରି ଉଡ଼ିଯାଏ ।

**ବ୍ୟବହାର** :—ପ୍ରଦର୍ଶନୀ ଗୃହରେ ସ୍ମୋକ୍‌ସ୍କ୍ରିନ୍ ସୃଷ୍ଟି କରିବା ପାଇଁ ତୁମେ ଏହି ପରୀକ୍ଷାଟିକୁ କରିପାରିବ ।



# ଫାୟାର୍ ବଲ୍ କୋନ୍

ଉପକରଣ :—

୧ । ଟିଣଡ଼ବା  ୨ । ଟିଣକାହ୍ଲାଲୀ

୩ । ତମ୍ବାତାର  ୪ । କରୁଗ୍ର

୫ । କାଟନ୍ ବଲ୍ ସ  ୬ । ଆଲୁମିନିୟମ୍ ପାଉଡ଼ର

୭ । ନାଇଟର୍  ୮ । ଗନ୍ଧକ

୯ । ମ୍ୟାଗ୍ନେସିୟମ୍ ପାଉଡ଼ର  ୧୦ । ଷ୍ଟୋଲ୍

୧୧ । ଗମ୍



ପରୀକ୍ଷା :—ଗୋଟିଏ ସିଲିଣ୍ଡର ଆକୃତିର ଟିଣଡ଼ବା ନିଅ । ଏହାର ଉପର ଓ ତଳ ଅଂଶରେ କେତୋଟି ଲେଖାଏଁ ରନ୍ଧ୍ର କର । ଗୋଟିଏ ଟିଣ କାହ୍ଲାଲୀ ନିଅ । ମୋଟା ତମ୍ବା ତାରର ଗୋଟିଏ ଖଲ୍

କଅ । ଏଥିରୁ ସମାନ ମାପର (୧୦-୧୫)ଟି ତାର କାଟ । ଏହି ତାରକୁ ଏକାଠି କରି ଗୋଟିଏ ଗୁଚ୍ଛ ପ୍ରସ୍ତୁତ କର । ଏହି ଗୁଚ୍ଛକୁ କାହାଳୀ ମଧ୍ୟରେ ପ୍ରବେଶ କରାଅ । ତାର ଗୁଚ୍ଛର (୧୦-୧୫ ସେ.ମି ଅଂଶ କାହାଳୀର ସମ୍ମୁଖର ଆଗସ୍ଥଳ ଆଡ଼କୁ ଏବଂ (୫-୬) ସେ.ମି ଅଂଶ କାହାଳୀ ମୁହଁର ଉପର ସ୍ଥଳ ଆଡ଼କୁ ଯେପରି ରହିବ ସେଥିପ୍ରତି ଦୃଷ୍ଟି ରଖ ।

କାର୍ବନ ବଲ୍ କିପରି ପ୍ରସ୍ତୁତ ହୁଏ, ତାହା ତୁମେ ପୂର୍ବରୁ ଜାଣିଛ । ଗୋଟିଏ ଗିନାରେ ଷ୍ଟର୍କୋଲ୍ ପାଉଡ଼ର, ଗମ୍, ନାଇଟର ଓ ଗନ୍ଧକ ଏକତ୍ରକରି ଗୁଣ୍ଡ କର ଏବଂ ସେଥିରେ ସେହି ମିଶ୍ରଣର ଏକ ତୃତୀୟାଂଶ ମ୍ୟାଗ୍ନେସିୟମ୍ ପାଉଡ଼ର ଓ ଆଲୁମିନିୟମ୍ ପାଉଡ଼ର ମିଶାଅ । ସେଥିରେ ଆବଶ୍ୟକ ପରିମାଣରେ ପାଣି ମିଶାଇ ଫେଣ୍ଟ । ଏହି ମଣ୍ଡରୁ କିଛି ଅଂଶ ନେଇ କାର୍ବନ୍ ବଲ୍ ଗୁଡ଼ିକ ଉପରେ ବୋଳ ଓ ଖରାରେ ଶୁଖାଅ ।

କାହାଳୀ ନଳୀର ଆଗସ୍ଥଳରେ ଥିବା ତାରଗୁଚ୍ଛକୁ ଓସାର ଗୋଟିଏ କୋନ୍ ପରି କର ଓ ଏହି କୋନ୍ ଦେହରେ କାର୍ବନ୍ ବଲ୍ ଗୁଡ଼ିକୁ ଲଗାଅ । ବର୍ତ୍ତମାନ ଟିଣଡ଼ବା ମଧ୍ୟରେ ଗୋଟିଏ ମହମବତୀ ଜାଳ ଓ କାହାଳୀକୁ ତାହା ଉପରେ ଓଲଟାଇ ରଖ । କିଛିସମୟ ପରେ ବଲ୍‌ର କୋନ୍‌ଟିକୁ ଲକ୍ଷକର । କୋନ୍‌ର ବଲ୍‌ଗୁଡ଼ିକ ଜଳି ଖାଲି ଶୁଭ୍ର ଆଲୋକ ଦେବାକୁ ଆରମ୍ଭ କରିବ ।

**କାରଣ** :—ତମ୍ବା ଧାତୁ ଉତ୍ତାପର ସୁପରିବାହୀ । ଏହି ପରିବାହୀ ମଧ୍ୟଦେଇ ଉତ୍ତାପ କାର୍ବନ୍ ବଲ୍ ଦେହକୁ ସଞ୍ଚାଳିତ ହୁଏ । କାର୍ବନ୍ ବଲ୍‌ରେ ନାଇଟର୍ ଦାହକ ପଦାର୍ଥ ରୂପେ ଥାଏ । ଏହା ଗନ୍ଧକ ଓ କାର୍ବନ୍ ସୁଟ୍‌ରେ ନିଆଁ ସୃଷ୍ଟି କରେ । ଶେଷରେ କାର୍ବନ୍ ବଲ୍‌ର ଉତ୍ତାପ ଜିଙ୍କ୍ ଓ ଆଲୁମିନିୟମ୍ ପାଉଡରକୁ ଉତ୍ତପ୍ତ କରି ସେଥିରୁ ଶୁଭ୍ର ଆଲୋକ ବାହାର କରେ ।

**ବ୍ୟବହାର** :—ଗୋଟିଏ ପ୍ରଦର୍ଶନୀରେ ଏହା କୃତ୍ରିମ ଆଲୋକ ଦେବାପାଇଁ ବ୍ୟବହୃତ ହୁଏ ।

●